# ଅମର ଚରିତ



କୁନ୍ତଳା କୁମାରୀ

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲିଃ

# କୁନ୍ତଳାକୁମାରୀ

ଲେଖକ—

ଅଧ୍ୟାପକ ସର୍ବେଶ୍ୱର ଦାଶ

ଦ୍ୱିତୀୟ ସଂସ୍କରଣ

ପ୍ରକାଶକ—

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲି:

ବ୍ରହ୍ମପୁର : କଟକ : ସମ୍ବଲପୁର

୧୯୫୫



# ସୂଚୀ

# କୁନ୍ତଳାକୁମାରୀ

## —ଜନ୍ମ—

ଯେଉଁସବୁ ଅଞ୍ଚଳକୁ ନେଇ ବର୍ତ୍ତମାନ ଓଡ଼ିଶା ପ୍ରଦେଶ ଗଢ଼ା ଯାଇଛି, ସେହିସବୁ ଅଞ୍ଚଳକୁ ଛାଡ଼ିଦେଲେ ଯଥେଷ୍ଟ ଅନେକ ଓଡ଼ିଆ ଅଞ୍ଚଳ ଓଡ଼ିଶାର ରାଜନୈତିକ ସୀମା ବାହାରେ ରହିଯାଇଛି । ସେହି ଅଞ୍ଚଳମାନଙ୍କୁ ବିଚ୍ଛିନ୍ନାଞ୍ଚଳ କୁହାଯାଏ । ସେହିସବୁ ସ୍ଥାନରେ ଏବେ ମଧ୍ୟ ବହୁ ଓଡ଼ିଆ ବସବାସ କରି ରହିଅଛନ୍ତି । ବସ୍ତର ରାଜ୍ୟ ଏହିପରି ଏକ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳ । ପୂର୍ବେ ଏହା ଏକ ସ୍ୱତନ୍ତ୍ର ଗଡ଼ଜାତ ଥିଲା । ଭାରତ ସ୍ୱାଧୀନ ହେବା ପରେ ଏହା ମଧ୍ୟପ୍ରଦେଶ ସହିତ ସାମିଲ ହୋଇଅଛି । ସେହି ବସ୍ତର ରାଜ୍ୟର ଏକ ଖ୍ରୀଷ୍ଟିୟାନ ପରିବାରରେ କୁନ୍ତଳାକୁମାରୀ ୧୯୦୦ ଖ୍ରୀଷ୍ଟାବ୍ଦ ଫେବ୍ରୁଆରୀ ଅଠ ତାରିଖରେ ଜନ୍ମ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଦାନିଏଲ ସାବତ । ମା ଶ୍ରୀମତୀ ମଣିକା ସାବତ । କୁନ୍ତଳାକୁମାରୀଙ୍କର ଅନ୍ୟ ଦୁଇଟି ସାନ ଭଉଣୀ ମଧ୍ୟ ଥିଲେ । ଜନ୍ମମାଟିର ସୁଖ ଭୋଗ କରିବାର ସୌଭାଗ୍ୟ ତାଙ୍କ ଜୀବନରେ ଘଟି ନ ଥିଲା । ତାଙ୍କର ପିତା ବ୍ରହ୍ମଦେଶରେ ଡାକ୍ତରି ଚାକିରି କରୁଥିଲେ । ସେଥିପାଇଁ ୧୩ ବର୍ଷ ବୟସ ପର୍ଯ୍ୟନ୍ତ କୁନ୍ତଳାକୁମାରୀ ଭାରତ ବାହାରେ ସୁଦୂର ବ୍ରହ୍ମଦେଶରେ ରହି ଲାଳିତପାଳିତ ହୋଇଥିଲେ ।

## —ବାଲ୍ୟାବସ୍ଥା—

କୁନ୍ତଳାକୁମାରୀ ଦେଖିବାକୁ ବେଶ୍ ସୁନ୍ଦର ଥିଲେ । ତାଙ୍କ ଦେହରୁ ଗୋଟାଏ ଦୀପ୍ତି ଫୁଟି ବାହାରୁଥିଲା । ସୁନ୍ଦର ରୂପ ସାଙ୍ଗକୁ ଭଗବାନ୍ ତାଙ୍କୁ ସୁନ୍ଦର କଣ୍ଠ ଦେଇଥିଲେ । ସେ ଭଲ ଗାଇ ପାରୁଥିଲେ । ତାଙ୍କର ମଧୁର ସଂଗୀତ ଯିଏ ଥରେ ଶୁଣିଛି ସେ ତା ଜୀବନଯାକ କଦାପି ଭୁଲିପାରିବ ନାହିଁ । ପିଲାଦିନେ କୁନ୍ତଳା-କୁମାରୀ କୌଣସି ବିଦ୍ୟାଳୟରେ ପାଠ ପଢ଼ିବାର ସୁଯୋଗ ପାଇ ନ ଥିଲେ । ସେ ତାଙ୍କ ମା'ଙ୍କଠାରୁ ଓଡ଼ିଆ ଭାଷା ଶିକ୍ଷା କରିଥିଲେ । ଇଂରାଜୀ ଶିକ୍ଷା ବି ସେ ଘରେ ପାଇଥିଲେ । ଏହିପରି ଭାବରେ ୧୩ ବର୍ଷ ବୟସ ପର୍ଯ୍ୟନ୍ତ ସେ ଯାହା କିଛି ଶିକ୍ଷା କରିଥିଲେ, ସେସବୁ ନିଜ ଘରେ । ତାଙ୍କର ପିତା ଶିକ୍ଷିତ ଓ ମାର୍ଜିତ ରୁଚିର ଖ୍ରୀଷ୍ଟିୟାନ ଥିଲେ ସୁଦ୍ଧା ତାଙ୍କୁ କୌଣସି ସ୍କୁଲରେ ଭର୍ତ୍ତି କରିବାର ପକ୍ଷପାତୀ ନ ଥିଲେ । ତାର କାରଣ ବ୍ରହ୍ମଦେଶର ଭାଷା ଅଲଗା, ସେ ଦେଶର ବିଦ୍ୟାଳୟମାନଙ୍କରେ ଓଡ଼ିଆ ପଢ଼ାଯାଏ ନାହିଁ । କୁନ୍ତଳାକୁମାରୀଙ୍କ ବାପା ଭଲକରି ବୁଝିଥିଲେ ଯେ ମାତୃଭାଷାର ବିନା ସାହାଯ୍ୟରେ ବାଲ୍ୟଶିକ୍ଷା କଦାପି ପୂର୍ଣ୍ଣାଙ୍ଗ ହୋଇପାରିବ ନାହିଁ । ସେଥିପାଇଁ ନିଜର କନ୍ୟାମାନଙ୍କୁ ସେଠାକାର ବିଦ୍ୟାଳୟ-ମାନଙ୍କରେ ପଢ଼ାଇବା ପାଇଁ ସେ ବିଶେଷ ଉତ୍ସାହ ଦେଖାଇ ନ ଥିଲେ ।

କୁନ୍ତଳାକୁମାରୀ ଅସାଧାରଣ ବୁଦ୍ଧିମତୀ ଥିଲେ । ପାଠପ୍ରତି ତାଙ୍କର ଭାରି ଅଗ୍ରହ ଥିଲା । ଥରେ ଗୋଟିଏ କଥା କହିଦେଲେ ପଥର ଗାର ପରି ତାହା ତାଙ୍କର ମନେ ରହି ଯାଉଥିଲା । ପୁଣି ନିତ ନିତ ନୂଆ ନୂଆ ବିଷୟ ଜାଣିବା ପାଇଁ ତାଙ୍କ ମନ ସବୁବେଳେ ଛଟପଟ ହେଉଥିଲା । ବଙ୍ଗଳା ଶିଖିବା ପାଇଁ ତାଙ୍କର ଭାରି ମନ ।

କରୁ ବଙ୍ଗଳା ଶିଖାଇଦେଉଛନ୍ତି କିଏ ? ତେବେ କୁନ୍ତଳାକୁମାରୀ କି ଘରେ ବସି ଜିଅ ? ଦୋକାନରୁ ଯେଉଁସବୁ ଜିନିଷ କାଗଜରେ ବନ୍ଧା ହୋଇ ଘରକୁ ଆସେ, ସେହି ଚିରା କାଗଜରୁ ଆପଣାଛାଏଁ ସେ ବଙ୍ଗଳା ଭାଷା ଶିଖି ପକାଇଲେ । ଏହିପରି ଭାବରେ କୌଣସି ବିଦ୍ୟାଳୟରେ ନାଁ ଲେଖାଇବା ପୂର୍ବରୁ କୁନ୍ତଳାକୁମାରୀ ଓଡ଼ିଆ, ଇଂରାଜୀ ଓ ବଙ୍ଗଳାରେ ସାଧାରଣ ଜ୍ଞାନ ଲାଭ କରିସାରିଥିଲେ ।

## —ଛାତ୍ରଜୀବନ—

ତେର ବର୍ଷ ବୟସରେ କୁନ୍ତଳାକୁମାରୀ କଟକ ଆସିଲେ ଏବଂ ରେଭେନ୍ସା ବାଳିକା ବିଦ୍ୟାଳୟରେ ନାଁ ଲେଖାଇ ନିୟମିତ-ଭାବରେ ପଢ଼ାଶୁଣା ଆରମ୍ଭ କଲେ । ବିଦ୍ୟାଳୟରେ ଜଣେ ଭଲ ଛାତ୍ରୀ ଭାବରେ ତାଙ୍କର ଖୁବ୍ ଖ୍ୟାତି ଥିଲା । ପ୍ରାୟ ପ୍ରତି ବର୍ଷ ସେ ଶ୍ରେଣୀରେ ପ୍ରଥମ ହେଉଥିଲେ । ବିଦ୍ୟାଳୟ ଶିକ୍ଷା ସଂପୂର୍ଣ୍ଣ କରି ସେ ଡାକ୍ତରି ପଢ଼ିବା ପାଇଁ ମନ ବଳାଇଲେ । ଓଡ଼ିଶାରେ ଡାକ୍ତରି ସ୍କୁଲ ବୋଲି ଗୋଟିଏ । ନାଁ ଲେଖାଇବା ପାଇଁ ଛାତ୍ରମାନଙ୍କର ଭାରି ଭିଡ଼ । ସେଥି ଯୋଗୁ ଗୋଟିଏ ବାଛବିଛି ପରୀକ୍ଷା ହେଉଥିଲା । ଏହି ବାଛବିଛି ପରୀକ୍ଷାରେ ଯେଉଁମାନେ ଉତ୍ତୀର୍ଣ୍ଣ ହେଉଥିଲେ ସେହିମାନଙ୍କୁ କେବଳ ଥାନ ମିଳୁଥିଲା । ୧୯୧୭ ଖ୍ରୀଷ୍ଟାବ୍ଦର ପ୍ରତିଯୋଗିତା ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି କୁନ୍ତଳା-କୁମାରୀ କଟକର ଓଡ଼ିଶା ମେଡ଼ିକାଲ ସ୍କୁଲରେ ଭର୍ତ୍ତି ହେଲେ । ଡାକ୍ତରି ସ୍କୁଲର ପ୍ରତିଯୋଗିତା ପରୀକ୍ଷାରେ ପ୍ରଥମ ହେବା, ଗୋଟିଏ ଝିଅ ପକ୍ଷରେ ଏହା ସର୍ବପ୍ରଥମ ଘଟଣା । ୧୯୨୧ ସାଲରେ ସବୁ ବିଷୟରେ ପ୍ରଥମ ହୋଇ କୁନ୍ତଳାକୁମାରୀ ଡାକ୍ତରି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ପୁରସ୍କାରସ୍ୱରୂପ ତାଙ୍କୁ ଅନେକ ସୁନା ଓ ରୁପା ପଦକ ମିଳିଲା । ଅନ୍ଧକାର ଯୁଗରେ ଅନେକ ଓଡ଼ିଆଝିଅ ଡାକ୍ତରୁଣୀ,

ଶିକ୍ଷୟିତ୍ରୀ ଓ ଅଧ୍ୟାପିକା ହେଲେଣି । କିନ୍ତୁ ସେତେବେଳକାର ଦିନରେ ସବୁ ପୁଅପିଲାଙ୍କୁ ହଟେଇ ଜଣେ ଝିଅ ପରୀକ୍ଷାରେ ପ୍ରଥମ ହେବା ଏକ ନୂଆ କଥା ଥିଲା । ନିଜର ଏହି ଅସାଧାରଣ କୃତିତ୍ୱ ଯୋଗୁ ସେ ଏହି ସୁକୁମାର ବୟସରେ ମଧ୍ୟ ସମୁଦାୟ ଜନତାର ଦୃଷ୍ଟି ଆକର୍ଷଣ କରି ପାରିଥିଲେ ।

## —ଡାକ୍ତର—

ଏଲ୍. ଏମ୍. ପି. ପାସ୍ କରିବାର କୁନ୍ତଳାକୁମାରୀ କଟକ ମେଡ଼ିକାଲ୍ ସୋସାଇଟିରେ ଗୃହକର୍ତ୍ତ୍ରୀ ହେଲେ । ସୋସାଇଟିକୁ ଚଳାଇବାର ସଂପୂର୍ଣ୍ଣ ଭାର କୁନ୍ତଳାକୁମାରୀଙ୍କ ଉପରେ ପଡ଼ିଲା । ତାଙ୍କର ସେହି ଏ ବିଶେଷ ଗୁଣ ଥିଲା ଯେ ଯେଉଁ କାମ ହାତରେ ନେଉଥିଲେ ତହିଁରେ ମନପ୍ରାଣ ଢାଳିଦେଇ ଲାଗି ପଡ଼ୁଥିଲେ । ସାତ ବର୍ଷ କାଳ ଏହି କାର୍ଯ୍ୟକୁ ସେ ଅତ୍ୟନ୍ତ ଦକ୍ଷତାର ସହିତ ଚଳାଇଲେ । କିନ୍ତୁ ୧୯୨୭ ଖ୍ରୀଷ୍ଟାବ୍ଦରେ ଉପର ହାକିମଙ୍କ ସଙ୍ଗେ କେତେକ ବିଷୟରେ ତାଙ୍କର ମତ ଅନେକ୍ୟ ହେଲା । ତେଣୁ କୁନ୍ତଳାକୁମାରୀ ମେଡ଼ିକାଲ୍ ସୋସାଇଟିରୁ ଇସ୍ତଫା ଦେଇ ବାହାରି ଆସିଲେ । ଇଚ୍ଛା କରିଥିଲେ ସେ ପୁଣି ଚାକିରୀ କରି ପାରିଥାନ୍ତେ । କିନ୍ତୁ କୁନ୍ତଳାକୁମାରୀ ଭାରି ତେଜସ୍ୱିନୀ ନାରୀ ଥିଲେ । ଗୋଲାମିର ଜୀବନରେ ବାନ୍ଧିହେବା ପାଇଁ ତାଙ୍କର ଆଉ ମନ ଡାକିଲା ନାହିଁ । ସ୍ୱାଧୀନଭାବରେ ଜୀବିକା ନିର୍ବାହ କରିବା ପାଇଁ ସେ ଶେଷରେ ସ୍ଥିର କଲେ ।

ତା ପରେ ସେ ଚଳେ ଦିଲ୍ଲୀ । ସେଠାରେ ସେ ସ୍ୱାଧୀନଭାବରେ ଡାକ୍ତରୀ ବ୍ୟବସାୟ ଆରମ୍ଭ କରିଦେଲେ । ଡାକ୍ତରୀ ବିଦ୍ୟାରେ କୁନ୍ତଳାକୁମାରୀ ଅବଶ୍ୟ ଧୁରନ୍ଧର ଥିଲେ । କିନ୍ତୁ

ଭାରତର ରାଜଧାନୀ ଦିଲ୍ଲୀରେ କୁନ୍ତଳାଙ୍କଠାରୁ ବଡ଼ ବଡ଼ ଉପାଧିଧାରୀ ବିଲାତ-ଆମେରିକା-ଫେରନ୍ତା କେତେ ଡାକ୍ତର ଡାକ୍ତରାଣୀ ନାହାନ୍ତି । ତଥାପି ଓଡ଼ିଆଝିଅ କୁନ୍ତଳାକୁମାରୀ ତାଙ୍କର ଶସ୍ତ୍ର-କୌଶଳ ଓ ବ୍ୟବହାରଦ୍ୱାରା ସମସ୍ତଙ୍କର ମନ କିଣିନେଲେ । ସମସ୍ତେ ତାଙ୍କୁ ଶ୍ରଦ୍ଧା ଓ ବିଶ୍ୱାସ କଲେ । ଅଳ୍ପ ଦିନଭିତରେ ଶସ୍ତ୍ର-ଜଗତରେ ତାଙ୍କର ଖ୍ୟାତି ବ୍ୟାପିଗଲା । ସେ ସେଠାରେ ଏତେ ଜନପ୍ରିୟ ହୋଇ ପଡ଼ିଲେ ଯେ "ସାର୍ବଦେଶିକ ମାତୃମଙ୍ଗଳ କ୍ଲିନିକ୍" ନାମକ ପ୍ରସିଦ୍ଧ ମାତୃମଙ୍ଗଳ ଅନୁଷ୍ଠାନର ପରିଚାଳନା ଭାର ତାଙ୍କ ଉପରେ ପଡ଼ିଲା । ସାତ ବର୍ଷକାଳ ସେ ଏହି କାର୍ଯ୍ୟ କୃତିତ୍ୱର ସହିତ ଚଳାଇ ସମସ୍ତଙ୍କର ପ୍ରଶଂସାଭାଜନ ହୋଇ ପାରିଥିଲେ । ଓଡ଼ିଆଝିଅ କୁନ୍ତଳାକୁମାରୀ ମହାନଗରୀ ଦିଲ୍ଲୀରେ ଯେଉଁ ଆସନ ପ୍ରତିଷ୍ଠା କରିପାରିଥିଲେ, ତାହା ଆଜିଯାଏ ଉତ୍କଳର କୌଣସି ପୁରୁଷଙ୍କ ପକ୍ଷରେ ମଧ୍ୟ ସମ୍ଭବପର ହୋଇ ନାହିଁ ।

## — ସାହିତ୍ୟସାଧନା —

ଆଗରୁ କୁହାଯାଇଛି କୁନ୍ତଳାକୁମାରୀ ଜଣେ ବଡ଼ ଡାକ୍ତର ଥିଲେ । ଡାକ୍ତର କୁନ୍ତଳାକୁମାରୀଙ୍କୁ ଲୋକେ ଭୁଲିଯାଇପାରନ୍ତି । ତାଙ୍କଠାରୁ ବହୁତ ବଡ଼ ଡାକ୍ତର ଏ ଦେଶରେ ବାହାରିଲେଣି ଓ ବାହାରିବେ । କିନ୍ତୁ ଓଡ଼ିଆ ଜାତି ସବୁ ଦିନେ ତାଙ୍କୁ ମନେ ପକାଉଥିବ ତାଙ୍କର ସାହିତ୍ୟସାଧନା ପାଇଁ । ଡାକ୍ତର ଭାବରେ ସେ ଶହ ଶହ ରୋଗୀଙ୍କର ଚିକିତ୍ସାର ବ୍ୟବସ୍ଥା କରୁଥିଲେ । ସେମାନଙ୍କର ଦେହ-ଦୁଃଖ ଦୂର କରି ସେମାନଙ୍କ ଜୀବନରେ ସୁଖ, ସ୍ୱାସ୍ଥ୍ୟ ଓ ଆନନ୍ଦ ଫେରାଇ ଆଣୁଥିଲେ । ତାଙ୍କର ସାହିତ୍ୟକୁ ମଧ୍ୟ ସେ ସେହିପରି ବ୍ୟବସ୍ଥାରେ ଲଗାଇଥିଲେ । ରୁଗ୍ଣ ଜାତିର ସ୍ୱାସ୍ଥ୍ୟ ପାଇଁ ସେ ବାଇଥିଲେ ଅଗ୍ନିର ବୀଣା, ଏହି ନିଦ୍ରିତ ଜାତିର କୁମ୍ଭକର୍ଣ୍ଣ

ନିଦ୍ରା ଭାଙ୍ଗିବା ପାଇଁ ସେ ଗାଇଥିଲେ ବିପ୍ଳବର ପ୍ରାଣମତାଣିଆ ସଂଗୀତ । ଦେଶରୁ କୁସଂସ୍କାର ଦୂର କରି ଓଡ଼ିଆ ଜାତିକୁ ସୁସ୍ଥ ଓ ସବଳ କରି ଗଢ଼ିବା ପାଇଁ ସେ ଲେଖିଥିଲେ କେତେ ଗଳ୍ପ, ଉପନ୍ୟାସ ଓ ପ୍ରବନ୍ଧ । କଟକରେ ରେଡ଼୍‌କ୍ରସ୍ ସୋସାଇଟିରେ ଚାକିରି କରୁଥିବା ବେଳେ ସେ 'ଅଞ୍ଜଳି', 'ଅର୍ଚ୍ଚନା' ଓ 'ସ୍ଫୁଲିଙ୍ଗ' ଇତ୍ୟାଦି କବିତାଗ୍ରନ୍ଥ ରଚନା କରିଥିଲେ । ଏହାଛଡ଼ା 'ଭ୍ରାନ୍ତି', 'ନଅତୁଣ୍ଡୀ', 'ପରଶମଣି' ଓ 'କାଳୀବୋହୂ' ଇତ୍ୟାଦି ଅନେକଗୁଡ଼ିଏ କ୍ଷୁଦ୍ର ଉପନ୍ୟାସ ଲେଖି ସେ ଓଡ଼ିଆ କଥା-ସାହିତ୍ୟରେ ବିପୁଳ ପ୍ରତିଷ୍ଠା ଅର୍ଜନ କରିଥିଲେ । ଏହି ସମୟ ତାଙ୍କ ସାହିତ୍ୟକ ଜୀବନର ପ୍ରାଥମିକ ବିକାଶ କାଳ ।

ତା ପରେ ସେ ଗଲେ ଦିଲ୍ଲୀ । ଦିଲ୍ଲୀରେ ଶହ ଶହ ରୋଗୀଙ୍କର ଚିକିତ୍ସା ଭାର ହାତରେ ନେଇ ମଧ୍ୟ ସେ ଓଡ଼ିଆ ସାହିତ୍ୟକୁ ପାସୋରି ଦେଇ ନ ଥିଲେ । ମାତୃଭାଷା ଓ ମାତୃଭୂମି ପ୍ରତି ତାଙ୍କର ଗଭୀର ମମତା ଥିଲା । ତେଣୁ ସାହିତ୍ୟକୁ ସେ ଜୀବନର ପରମ ବ୍ରତ ରୂପେ ଗ୍ରହଣ କରିଥିଲେ । ଏହି ସମୟରେ ସେ 'ରଘୁଅରକ୍ଷିତ' ନାମକ ଏକ ବଡ଼ ଉପନ୍ୟାସ ଏବଂ 'ପ୍ରେମଚିନ୍ତାମଣି' ନାମକ ଏକ ସୁଲଳିତ ଓ ମଧୁର ଗୀତିକାବ୍ୟ ରଚନା କରିଥିଲେ । ଏ ପ୍ରତ୍ୟେକ ଲେଖା ଓଡ଼ିଆ ସାହିତ୍ୟର ଏକ ଏକ ସମୁଜ୍ଜ୍ୱଳ ରତ୍ନ । ଓଡ଼ିଆ ପତ୍ରପତ୍ରିକାମାନଙ୍କରେ ମଧ୍ୟ ସେ ନିୟମିତଭାବରେ ଲେଖାଲେଖି କରୁଥିଲେ ।

## —ଭାରତୀ ତପୋବନ ସଂଘ—

ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ସେ ଦିଲ୍ଲୀଠାରେ 'ଭାରତୀ ତପୋବନ ସଂଘ' ନାମରେ ଏକ ସଂଘ ସ୍ଥାପନ କରିଥିଲେ । ଉତ୍କଳର ଲେଖକ, ଲେଖିକା, କବି, .. ଚିତ୍ରକର, ଜ୍ଞାନୀ

ଓ କର୍ମୀମାନଙ୍କ ସଂଘବଦ୍ଧ କରି ଏକାଠି କରିବା ଏବଂ ପ୍ରତ୍ୟେକଙ୍କୁ ପ୍ରତ୍ୟେକର ଚିନ୍ତା ଓ ଅନ୍ୟାନ୍ୟ ବିଷୟ ଜଣାଇବା ଥିଲା ଏହାର ପ୍ରଧାନ ଉଦ୍ଦେଶ୍ୟ । ଏହାଛଡ଼ା ଉତ୍କଳକୁ ଭାରତର ଅନ୍ୟାନ୍ୟ ପ୍ରଦେଶ ସହିତ ଓ ଭାରତ ବାହାର ଦେଶ-ମାନଙ୍କ ସହିତ ପରିଚିତ କରାଇବା, ଅପ୍ରକାଶିତ ପୁସ୍ତକ ପ୍ରକାଶ କରାଇବା, ଅଜଣା କାରିଗର, ଶିଳ୍ପୀ ଓ ସାହିତ୍ୟିକଙ୍କୁ ଦେଶରେ ପରିଚିତ କରାଇବା ଏବଂ ଉତ୍କଳର ନାରୀଜାତିକୁ ଉପଯୁକ୍ତ ବାଟ ଦେଖାଇ ଭାରତୀୟ ଆଦର୍ଶରେ ଗଢ଼ିବା ଥିଲା ଏହି ସଂଘର ଅନ୍ୟତମ ଉଦ୍ଦେଶ୍ୟ । ଏସବୁଥିରୁ କୁନ୍ତଳାକୁମାରୀଙ୍କର ମୌଳିକ ଚିନ୍ତାଧାରା ଓ ଅପୂର୍ବ ସଂଗଠନ-ଶକ୍ତିର ପରିଚୟ ମିଳେ ।

## —କବି କୁନ୍ତଳା—

କୁନ୍ତଳାକୁମାରୀ ଉତ୍କଳର ଶ୍ରେଷ୍ଠ ନାରୀକବି । ତାଙ୍କ କବିତାଗୁଡ଼ିକ ଅତ୍ୟନ୍ତ ମର୍ମସ୍ପର୍ଶୀ ଓ ହୃଦୟଗ୍ରାହୀ । ସେଗୁଡ଼ିକରେ ଏମିତି ଅପୂର୍ବ ଶକ୍ତି ପୂରି ରହିଅଛି ଯେ ଥରେ ପଢ଼ିଲେ ପ୍ରାଣ ଆବେଗରେ ମାତି ଉଠେ । ଶାସ୍ତ୍ରରେ ଅଛି ନାରୀ ଶକ୍ତିମୟୀ । ପୁରୁଷ ବଳରେ ଭାଗ କଲାବେଳେ ନାରୀ ତାକୁ ରାନ୍ଧି ବାଢ଼ି ଖାଇବାକୁ ଦିଏ, ତାର ଦେହଟା'ର ଯତ୍ନ ନିଏ—ପୁରୁଷ ଯୁଦ୍ଧକ୍ଷେତ୍ରକୁ ଗଲେ ନାରୀ ତାର ହୃଦୟରେ ସାହସ ଓ ପ୍ରେରଣା ଦିଏ । ୧୯୨୧ ଓ ୧୯୩୦ ର ସ୍ୱାଧୀନତା ଲଢ଼େଇରେ ଯେତେବେଳେ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଉତ୍କଳର ଯୁବକଗଣ ଅହିଂସା-ସଂଗ୍ରାମରେ ଝାସ ଦେଉଥିଲେ, କୁନ୍ତଳାକୁମାରୀ ସେତେବେଳେ 'ସ୍ଫୁଲିଙ୍ଗ' ଓ 'ଆହ୍ୱାନ' ଲେଖି ସେମାନଙ୍କୁ ଧୈର୍ଯ୍ୟ ଓ ସାହସ ଦେଉଥିଲେ । ସେମାନଙ୍କ ଅନ୍ତରରେ ବିପ୍ଳବର ନିଆଁ ଜାଳିଦେଉଥିଲେ ଏବଂ ବିଦେଶୀ ସରକାରକୁ ହଟାଇବା ପାଇଁ ସେମାନଙ୍କୁ ଯୁଦ୍ଧର ଡାକରା

ଦେଉଥିଲେ । ସେ ଯଥାର୍ଥରେ ଜନ୍ମଗତ ସୈନିକ-କବି । ତାଙ୍କ ମତରେ ଯେଉଁ ଜାତି ପରାଧୀନ, ସେ ଜାତିର ସ୍ୱାଧୀନତା-ଲାଭହିଁ ପରମ ଧର୍ମ ଏବଂ ତାହାହିଁ ଏକମାତ୍ର କାମ୍ୟ ହେବା ଉଚିତ । ସେଥିପାଇଁ କବି ଗାଇଛନ୍ତି —

"ଧର୍ମେ କର୍ମେ ସବୁ ଦେବୁ ଜଳାଞ୍ଜଳି
ଦାସଧର୍ମ ମୁକ୍ତ ମନେ ନେବୁଁ କଳି ।
ଦେଶ ଆମ ଧର୍ମ କର୍ମ ଜପାମାଳି
ଅଛୁଟର ଚନ୍ଦ ଜୀବନ-ସଙ୍ଗାଳି ।
ପୂଜା, ନମାଜରେ ନାହିଁ ପ୍ରୟୋଜନ
ସତ୍ୟାଗ୍ରହ ଆମ କର୍ତ୍ତବ୍ୟ ପରମ,
ବନ୍ଦିଶାଳ ଆମ ଇନ୍ଦ୍ର-ନିକେତନ ।"

ଆମ ଦେଶର ପୁରାଣ, ଇତିହାସରୁ ଦ୍ରୌପଦୀ, ଜଉହର, ରାଣୀ ଅହଲ୍ୟାବାଈ ଓ ଦୁର୍ଗାବାଈ ପ୍ରଭୃତି ବୀର-ରମଣୀମାନଙ୍କ ନାମ ଆମେ ଶୁଣିଅଛୁଁ । ଆମ କୁନ୍ତଳାକୁମାରୀ ଥିଲେ ସେହିମାନଙ୍କ ପରି ଜଣେ ବୀରାଙ୍ଗନା । ଓଡ଼ିଆ ସାହିତ୍ୟର ବିପ୍ଳବ-କବିତାମାନଙ୍କ ଭିତରେ ତାଙ୍କ କବିତା ଶ୍ରେଷ୍ଠ ସ୍ଥାନ ଅଧିକାର କରିବ, ସନ୍ଦେହ ନାହିଁ ।

କିନ୍ତୁ କୁନ୍ତଳାକୁମାରୀ କେବଳ ବିପ୍ଳବୀ-କବି ନ ଥିଲେ, ଭକ୍ତ-କବି ମଧ୍ୟ ଥିଲେ । ଦେଶପ୍ରେମ ଯେମିତି ତାଙ୍କ ହୃଦୟରେ ବିପ୍ଳବର ନିଆଁ ଜାଳିଦେଇଥିଲା, ଭଗବାନଙ୍କ ପ୍ରେମରେ ସେ ସେମିତି ପାଗଳ ହେଉଥିଲେ । ସୁଖସଂପଦ, ଧନଦଉଲତ, ଦୁଃଖଶୋକ ଭୁଲି ସେ କାତର ପ୍ରାଣରେ ଭଗବାନଙ୍କୁ ଡାକୁଥିଲେ । ଦିନରାତି, ସଞ୍ଜସକାଳେ ଭଗବାନଙ୍କ ନାମ ଭଜୁଥିଲେ, ତାଙ୍କ ଗୁଣ କୀର୍ତ୍ତନ କରୁଥିଲେ ।

"ଗୃହେ ନାହିଁ ନାଥ ! ମାନ ଗଉରବ,
ଗୃହେ ନାହିଁ ସୁଖ ସମ୍ପଦ ଗରବ,
ସବୁ ତ ସରବ—ତବ ଅସରନ୍ତ ପ୍ରେମ-ସୁଧା ନିର୍ଝର ।"

'ଅର୍ଚ୍ଚନା' ଓ 'ଅଞ୍ଜଳି' ବହିରେ ଥିବା ପ୍ରତ୍ୟେକ କବିତା ଏହିପରି ମହାଭାବରେ ଭରା । ସେଗୁଡ଼ିକ ପଢ଼ିଲେ ମନରେ ଅପୂର୍ବ ଉତ୍ସାହ ଜନ୍ମେ, ଭଗବାନଙ୍କ ପାଦତଳେ ମୁଣ୍ଡ ଆପେ ଆପେ ନଇଁଯାଏ । ଭକ୍ତିରେ ମଣିଷ ଅସ୍ଥିର ହୁଏ ।

ସାଧାରଣ ଭକ୍ତମାନଙ୍କ ପରି ସିଂହାସନରେ ଥାପନା କରି ସେ ଦେବଙ୍କୁ କେବଳ ପୂଜା କରୁ ନ ଥିଲେ । ଜଗତରେ ଯେଉଁମାନେ ଦୁଃଖୀ ରଙ୍କୀ, ହେଙ୍ଗା ଉପାସୀ, ସେହିମାନଙ୍କ ଭିତରେ କୁନ୍ତଳା-କୁମାରୀ ଭଗବାନଙ୍କର ରୂପ ଦେଖିବାକୁ ପାଉଥିଲେ । ଭଗବାନଙ୍କର ଏହି ଦରିଦ୍ରନାରାୟଣ ରୂପଟି ତାଙ୍କର ଅତ୍ୟନ୍ତ ପ୍ରିୟ ଥିଲା । ପ୍ରାଣର ଆବେଗରେ ସେ ଗାଉଛନ୍ତି—

"ଖୋଜି ବୁଲୁ କିପାଁ ଶାସ୍ତ୍ରପଦ ?
ମୁଁ ପରା ଦୁଆରେ ଡାକୁଛି
କିପାଁ ଅନାହାରେ ତପୁଛୁ ଅରଣ୍ୟେ ?
ମୁଁ ପରା ଉପାସୀ ବୁଲୁଛି ।
× × × ×
ସୁନା ଦୀପ ଜାଳି, ଥୋଇ ଅର୍ଘ୍ୟ ଥାଳି
କହ କେଉଁ ଦେବେ ବନ୍ଦୁଛୁ ?
ପଦାରେ ବୁଲେ ମୁଁ ପିନ୍ଧି ଛିଣ୍ଡା କନ୍ଥା
କେବେ କି ଭୁଲେ ତୁ ଚାହୁଁଛୁ ?

ପ୍ରାଚୀନ କବି ବୃନ୍ଦାବତୀ ଦାସୀଙ୍କୁ ଛାଡ଼ିଦେଲେ ଓଡ଼ିଶାର ଅଉ କୌଣସି ନାରୀକବି ଏପରି ମନୋହର ମର୍ମସ୍ପର୍ଶୀ କବିତା ଲେଖି ନାହାନ୍ତି ।

କବିଙ୍କ "ପ୍ରେମଚିନ୍ତାମଣି" କାବ୍ୟଟିରେ ରାଧାକୃଷ୍ଣଙ୍କ ପ୍ରେମ ବର୍ଣ୍ଣିତ ହୋଇଛି । ଏହାଛଡ଼ା ସେ "ଓଡ଼ିଆଣୀଙ୍କ କାନ୍ଦଣା" ବୋଲି ଅନ୍ୟ ଖଣ୍ଡିଏ ବହି ଲେଖିଥିଲେ । ଏଥିରେ ସେ ସ୍ୱଦେଶ ଓ ବିଦେଶରେ ସଢ଼ୁଥିବା ଓଡ଼ିଆଣୀମାନଙ୍କ ଦୁଃଖ ଓ ଲାଞ୍ଛନାର କରୁଣ କାହାଣୀ ବର୍ଣ୍ଣନା କରିଅଛନ୍ତି ।

କୁନ୍ତଳାକୁମାରୀ ପ୍ରକୃତିପ୍ରିୟା ଥିଲେ । ବଣ, ପାହାଡ଼, ନଈ, ଝରଣା ଓ ନୀଳ ସମୁଦ୍ରର ଦୃଶ୍ୟ ଦେଖି ସେ ମୁଗ୍ଧ ହୋଇଯାଉଥିଲେ । ଜହ୍ନରାତିରେ ଏକାକୀ ବସି ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ସେ ଭାରି ସୁଖ ପାଉଥିଲେ । ଓଡ଼ିଆ ସାହିତ୍ୟକୁ ତାଙ୍କର ଅତୁଳନୀୟ ଦାନ ଲାଗି ଦେଶବାସୀ ତାଙ୍କୁ ସମ୍ମାନ ଦେଖାଇବା ପାଇଁ ଶ୍ରଦ୍ଧାରେ ନାମ ଦେଇଛନ୍ତି "ଉତ୍କଳଭାରତୀ କୁନ୍ତଳାକୁମାରୀ" ।

## —ହିନ୍ଦି ସାହିତ୍ୟ ଚର୍ଚ୍ଚା—

କୁନ୍ତଳାକୁମାରୀ ଯେତେବେଳେ ଦିଲ୍ଲୀ ଯାଆନ୍ତି ସେତେବେଳେ ସେ ଆଦୌ ହିନ୍ଦି ଜାଣି ନ ଥିଲେ । କିନ୍ତୁ ନିଜର ଅସାଧାରଣ ପ୍ରତିଭା, ତୀକ୍ଷ୍ଣ ବୁଦ୍ଧି ଓ ଅଧ୍ୟବସାୟ ବଳରେ ସେ କୌଣସି ଶିକ୍ଷକର ସାହାଯ୍ୟ ନ ନେଇ ଅଳ୍ପ କାଳମଧ୍ୟରେ ହିନ୍ଦି ଶିଖି ପକାଇଲେ । ହିନ୍ଦି ଓ ଉର୍ଦ୍ଦୁ ଉପରେ ତାଙ୍କର ଏତେ ଦଖଲ ଆସିଗଲା ଯେ ନିଜ ମାତୃଭାଷା ପରି ସେ ଉକ୍ତ ଦୁଇ ଭାଷାରେ ସ୍ୱଚ୍ଛନ୍ଦରେ କଥାବାର୍ତ୍ତା କରି ପାରୁଥିଲେ । ଖାଲି ସେତିକି ନୁହେଁ, ସେ ହିନ୍ଦି ଭାଷାରେ ଅନେକ ବହି ମଧ୍ୟ ଲେଖି ପାରିଛନ୍ତି । ତାଙ୍କର ଶ୍ରେଷ୍ଠ ହିନ୍ଦି ରଚନା 'ବରମାଳା' ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ହିନ୍ଦି ସାହିତ୍ୟ ମହଲରେ ତାଙ୍କ ନାଁ ବ୍ୟାପିଗଲା । ଗୁରୁଜନଙ୍କ ଠାରୁ ଭୂରି ଭୂରି ପ୍ରଶଂସା ଆସିଲା । ଅଳ୍ପ କାଳ ମଧ୍ୟରେ ସେ ହିନ୍ଦି ସାହିତ୍ୟରେ ଜଣେ ନାମଜାଦା ଲେଖିକା ରୂପେ

ପରିଚିତ ହୋଇଗଲେ । ହିନ୍ଦି ସାହିତ୍ୟସେବାର ପୁରସ୍କାରସ୍ୱରୂପ ତାଙ୍କୁ ଦିଲ୍ଲୀ ପ୍ରାଦେଶିକ ହିନ୍ଦି ପ୍ରଚାରିଣୀ ସଭାର ସଭାନେତ୍ରୀ କରି ଯାଇଥିଲା ଏବଂ ଅଜି ତିନି ବର୍ଷ ସେ ଏହାର ଉପସଭାନେତ୍ରୀ ଥିଲେ । ଦରିଦ୍ର ଉତ୍କଳର ଜଣେ ନାରୀ ମଞ୍ଚରେ ଏ କୃତିତ୍ୱ କମ୍ ଗୌରବର କଥା ନୁହେଁ । କୁନ୍ତଳାକୁମାରୀଙ୍କର ହିନ୍ଦି ଶିଖିବାର ପ୍ରଧାନ ଉଦ୍ଦେଶ୍ୟ ଥିଲା ଓଡ଼ିଶାର ଶ୍ରେଷ୍ଠ ସାହିତ୍ୟିକମାନଙ୍କର ଲେଖାର ହିନ୍ଦି ତର୍ଜମା କରି ଭାରତର ସର୍ବାଞ୍ଚଳରେ ସେମାନଙ୍କୁ ପରିଚିତ କରାଇବା ଏବଂ ତହିଁ ସଙ୍ଗେ ସଙ୍ଗେ ଓଡ଼ିଶାର ଗୌରବକୁ ବାହାର ଲୋକମାନଙ୍କ ଭିତରେ ପ୍ରଚାର କରିବା ।

## —ସାମ୍ବାଦିକତା—

ହିନ୍ଦି-ସାହିତ୍ୟଜଗତରେ କୁନ୍ତଳାକୁମାରୀଙ୍କର ସ୍ଥାନ କିପରି ଥିଲା ତାହା ତାଙ୍କ ସଂପାଦିତ ପତ୍ରପତ୍ରିକାମାନଙ୍କରୁ ସ୍ପଷ୍ଟ ଜଣା ପଡ଼େ । 'ମହାବୀର' ନାମକ ଏକ ଦୈନିକ ହିନ୍ଦି ଖବରକାଗଜର ସେ ସଂପାଦିକା ଥିଲେ । ଏହାଛଡ଼ା 'ଜୀବନ', 'ମନମୌଜୀ', 'ନାରୀ' ଏବଂ 'ଭାରତୀ' ଇତ୍ୟାଦି ଅନେକଗୁଡ଼ିଏ ହିନ୍ଦି ମାସିକ-ପତ୍ରିକା ତାଙ୍କ ସଂପାଦନରେ ବାହାରୁଥିଲା । 'ସ୍ତ୍ରୀଭୂଷଣ' ନାମକ ଗୋଟିଏ ହିନ୍ଦି ସାପ୍ତାହିକ ପତ୍ରିକା ମଧ୍ୟ ସେ ବାହାର କରୁଥିଲେ । ଏହାଛଡ଼ା କଲିକତାରୁ ବାହାରୁଥିବା ଓଡ଼ିଆ ସାପ୍ତାହିକ ଖବର-କାଗଜ 'ପ୍ରବାସୀ ଓଡ଼ିଆ'ର ମଧ୍ୟ ସେ ସଂପାଦିକା ଥିଲେ । ଶହ ଶହ ରୋଗୀଙ୍କର ଚିକିତ୍ସା ଭାର ନେଇ ସେ କିପରି ଏତେଗୁଡ଼ିଏ ପତ୍ରିକା ସଂପାଦନ କରିବାକୁ ସମୟ ପାଉଥିଲେ, ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଏହି ଓଡ଼ିଆନାରୀର ପ୍ରତିଭାକୁ ଜୁହାର କରିବାକୁ ସ୍ୱତଃ ଇଚ୍ଛା ହୁଏ ।

## —ଦେଶସେବା ଓ ରାଜନୀତି—

କୁନ୍ତଳାକୁମାରୀ ଦେଶ ଓ ଜାତିକୁ ପ୍ରାଣଠାରୁ ବଳି ଭଲ ପାଉଥିଲେ । ଓଡ଼ିଆର ଉତ୍କଳ, ସାରଳା, ବଳରାମ, ଓଡ଼ିଶାର ପୁରୀ, କୋଣାର୍କ, ଭୁବନେଶ୍ୱର, ସବୁ ତାଙ୍କର ପ୍ରିୟ ଥିଲା । ଗୋଟିଏ କଥାରେ କହିଲେ, ଓଡ଼ିଶା ଭୂଇଁର ପ୍ରତ୍ୟେକ ଧୂଳିକଣାକୁ ସେ ପବିତ୍ର ମଣୁଥିଲେ । ଓଡ଼ିଶା ଲୋକଙ୍କ ଦୁଃଖ ଦୁର୍ଦ୍ଦଶାରେ ତାଙ୍କ ପ୍ରାଣ ସବୁବେଳେ ଅକୁଳ ହେଉଥିଲା । ସୁଦୂର ଦିଲ୍ଲୀ ସହରରେ ରହି ଓଡ଼ିଶାର ଯଶ, ଖ୍ୟାତି ଓ ଗୌରବକୁ ବାହାର ଦୁନିଆରେ ପ୍ରଚାର କରିବାକୁ ଓ ଓଡ଼ିଶାର ଶ୍ରେଷ୍ଠ ବ୍ୟକ୍ତିମାନଙ୍କୁ ଦାଣ୍ଡରେ ଚିହ୍ନାଇଦେବାକୁ ସେ ଜୀବନର ପରମ କର୍ତ୍ତବ୍ୟ ମଣୁଥିଲେ । ଦେଶବିଦେଶରେ କୌଣସିଠାରେ ଗୋଟିଏ ଓଡ଼ିଆପୁଅ ଭଲ ନାଁ କରୁଛି ଶୁଣିଲେ ତାଙ୍କ ଚିତ୍ତ ଆନନ୍ଦରେ କୁଣ୍ଢେ ମୋଟ ହୋଇ ଯାଉଥିଲା ।

ଓଡ଼ିଶା ଦେଶମିଶଣ ଆନ୍ଦୋଳନରେ ସେ ଜଣେ ପ୍ରଧାନ ନେତ୍ରୀ ଥିଲେ । ବାଦବିବାଦ, କଳିକନ୍ଦଳ ଭୁଲି ସବୁ ଓଡ଼ିଆ ଲୋକଙ୍କୁ ଏଥିଲାଗି ଏକ ହେବାପାଇଁ ସେ ସବୁବେଳେ ମତାଉ-ଥିଲେ । ସେତେବେଳେ ଓଡ଼ିଶା ବୋଇଲେ କଟକ, ପୁରୀ, ବାଲେଶ୍ୱର ଇତ୍ୟାଦି ପାଞ୍ଚଟି ମାତ୍ର ଜିଲ୍ଲାକୁ ବୁଝାଉଥିଲା । ଗଞ୍ଜାମ ଓ କୋରାପୁଟ ଜିଲ୍ଲା ଥିଲା ମାଦ୍ରାଜରେ, କଳାହାଣ୍ଡି ଜିଲ୍ଲାର ଫାଳେ ଥିଲା ମଧ୍ୟପ୍ରଦେଶରେ ଏବଂ ମୟୂରଭଞ୍ଜ, ଢେଙ୍କାନାଳ ପ୍ରଭୃତି ଜିଲ୍ଲା ସ୍ୱତନ୍ତ୍ର ଗଡ଼ଜାତ ଭାବରେ ଶାସିତ ହେଉଥିଲା । କୁନ୍ତଳାକୁମାରୀ ତେଣୁ କହୁଥିଲେ,"ଆମେ ବିରାଟ କଳିଙ୍ଗ ଦେଶର ସନ୍ତାନ । ଆମ ଦେଶର କୀର୍ତ୍ତି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବ୍ୟାପି ରହିଛି । ଆମେ କାହିଁକି ଆପଣାକୁ ହୀନ ଓଡ଼ିଆ ବୋଲି ପରିଚୟ ଦେବୁଁ ?"

ଗଞ୍ଜାମ, ସିଂହଭୂମ, ମେଦିନୀପୁର, ଫୁଲଝର, ଜୟପୁର, ପାରଳା-ଖେମଣ୍ଡି, ବସ୍ତରକୁ ନେଇ ବିଶାଳ ଉତ୍କଳର ସ୍ୱପ୍ନ ସେ ବରାବର ଦେଖୁଥିଲେ ଏବଂ ଏହି ସ୍ୱପ୍ନକୁ କାର୍ଯ୍ୟରେ ପରିଣତ କରିବା ପାଇଁ ସେ ଦେଶମିଶ୍ରଣ ଆନ୍ଦୋଳନରେ ମନପ୍ରାଣ ଢାଳି ଦେଇଥିଲେ । ଦେଶମିଶ୍ରଣ କଥା ଶୁଣି ସେ ଆନନ୍ଦରେ ଉନ୍ମାଦିନୀ ହୋଇ ଉଠୁଥିଲେ । ୧୯୩୬ ରେ ଯେତେବେଳେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶରୂପେ ଘୋଷିତ ହେଲା, ସେତେବେଳେ ଏହି ଦିବସଟିକୁ ଚିରସ୍ମରଣୀୟ କରିବାଲାଗି ସେ ପ୍ରସ୍ତାବ ଦେଇଥିଲେ, "ଆଜିଠାରୁ କି ସ୍ତ୍ରୀ କି ପୁରୁଷ ସମସ୍ତ ଓଡ଼ିଆ ନିଜ ନିଜ ନାଁ ପୂର୍ବରେ ଯେପରି ଶ୍ରୀବର୍ଣ୍ଣ ବୋଲି ଯୋଗ କରନ୍ତୁ ।"

ଉତ୍କଳଭାରତୀ କୁନ୍ତଳାକୁମାରୀଙ୍କ ଉତ୍କଳପ୍ରୀତି ଅତୁଳନୀୟ । କିନ୍ତୁ ତାଙ୍କର ଏହି ଦେଶପ୍ରୀତିରେ କ୍ଷୁଦ୍ର ସଂକୀର୍ଣ୍ଣତା ନ ଥିଲା । ମା ତାର ଦୁର୍ବଳ, ଅକ୍ଷମ ପୁଅଟିକୁ ସବୁଠାରୁ ଭଲ ପାଏ । ତା ବୋଲି ସେ ଅନ୍ୟମାନଙ୍କର ମଙ୍ଗଳ ଯେ ଚିନ୍ତା କରେ ନାହିଁ, ତାହା ନୁହେଁ । ସେ କେବଳ ଓଡ଼ିଶା କଥା ଭାବୁ ନ ଥିଲେ । ସାରା ଭାରତର ୪୦ କୋଟି ଲୋକଙ୍କର ମୁକ୍ତି ଥିଲା ତାଙ୍କର ଲକ୍ଷ୍ୟ । କିନ୍ତୁ ସେ ବିଶ୍ୱାସ କରୁଥିଲେ ଯେ ଦରିଦ୍ର ଉତ୍କଳ ନ ଉଠିଲେ ଭାରତ ଉଠିପାରିବ ନାହିଁ । ଆଧୁନିକ ଉତ୍କଳର ଜନକ ମଧୁବାବୁ ଠିକ୍ ଏହି କଥା କହୁଥିଲେ । ଆଗରୁ କୁହାଯାଇଛି କୁନ୍ତଳାକୁମାରୀ ଥିଲେ ବିପ୍ଳବୀ । ସାଧାରଣତଃ ବିପ୍ଳବମାନେ ଦୁଇ ଶ୍ରେଣୀର ଲୋକ ଲୋଡ଼ା ହୋଇ-ଥାନ୍ତି । କେତେ ଜଣ ଭାବ ଦିଅନ୍ତି ଏବଂ ଆଉ କେତେ ଜଣ ସେହି ଭାବକୁ କାର୍ଯ୍ୟରେ ପରିଣତ କରନ୍ତି । କୁନ୍ତଳାକୁମାରୀ ପ୍ରଥମ ଶ୍ରେଣୀର ବିପ୍ଳବୀ ଥିଲେ । ୧୯୨୯ ଖ୍ରୀଷ୍ଟାବ୍ଦରେ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଯେତେବେଳେ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ

ହେଲ, ସେତେବେଳେ ବୀରବାଳା କୁନ୍ତଳା ପ୍ରାଣମତାଣିଆ ସ୍ବରରେ ତାଙ୍କର ସଂଗୀତ ଗାଇ ଜଙ୍ଗଲର ଯୁବକମାନଙ୍କୁ ତାଙ୍କର ସ୍ବାଧୀନତା-ସଂଗ୍ରାମରେ ଝାସ ଦେବାପାଇଁ ଡାକ ଦେଇଥିଲେ। ଜଙ୍ଗଲର ଶତ ଶତ ଯୁବକହୃଦୟକୁ କୁନ୍ତଳାକୁମାରୀଙ୍କର ତାଙ୍କର ସଂଗୀତ ଅଥୟ କରିପକାଇଲା ଏବଂ ସେମାନେ ସ୍କୁଲକଲେଜ, ବାପମା, ଘରଦ୍ୱାର ଛାଡ଼ି ସ୍ୱାଧୀନତା-ଯୁଦ୍ଧର ନିଆଁ ଭିତରକୁ ଡେଇଁ ପଡ଼ିଲେ।

କୁନ୍ତଳାକୁମାରୀଙ୍କର ପଇସାର ଅଭାବ ନ ଥିଲା। ନିଜ ଅଧ୍ୟବସାୟ ବଳରେ ସେ ବହୁତ ପଇସା କମାଇଥିଲେ। ଇଚ୍ଛା କରିଥିଲେ ସେ ଦେଶର ବିଶିଷ୍ଟ ଧନୀଲୋକମାନଙ୍କ ଭଳି ବିଳାସବ୍ୟସନରେ ଜୀବନ କଟାଇ ପାରିଥାନ୍ତେ। କିନ୍ତୁ ଦେଶର କୋଟି କୋଟି କୁଲି ମଜୁରିଆ ଦୁର୍ବଳ ଦୁଇମୁଠା ଖାଇବାକୁ ନ ପାଇ ମରୁଥିବାବେଳେ, ସୁନାର ଭାରତ ପରାଧୀନତାର ଫାଶରେ ବାନ୍ଧିହୋଇ ସଢ଼ୁଥିବାବେଳେ ସେ ମୌଜମଜଲିସରେ ଦିନ କାଟିବାକୁ ଅପରାଧ ମଣିଥିଲେ। ମହାତ୍ମା ଗାନ୍ଧିଙ୍କ ଦୀକ୍ଷା ଗ୍ରହଣ କରି ସେ ବରାବର ଖଦଡ଼ ପିନ୍ଧୁଥିଲେ ଏବଂ ଅବସରରେ ସୂତା କାଟୁଥିଲେ। ସେ ଗାନ୍ଧି, ଗୋପବନ୍ଧୁ ପ୍ରଭୃତି ମହାପୁରୁଷ-ମାନଙ୍କର ଫଟୋ ରଖି ପୂଜା କରୁଥିଲେ। ତାଙ୍କର ଏହିସମସ୍ତ କାର୍ଯ୍ୟ ଓ ଉଗ୍ର ରାଜନୈତିକ ମତବାଦ ଯୋଗୁ ସେ ବିଦେଶୀ ସରକାରଙ୍କ କୋପଦୃଷ୍ଟିରେ ପଡ଼ିଥିଲେ ଏବଂ ସରକାର ତାଙ୍କର 'ଅହ୍ୱାନ' ବହିଟିକୁ ବାଜ୍ୟାପ୍ତ କରିଦେଇଥିଲେ। ତାଙ୍କ ଘର ପୋଲିସ ଅନେକ ଥର ଖାନତଲାସ କରିଛି ଏବଂ ତାଙ୍କୁ ଦୁଇ ତିନି ଥର ଗିରଫ ମଧ୍ୟ କରାଯାଇଛି।

ତାଙ୍କର ସବୁଠାରୁ ଭଲଗୁଣ ଥିଲା ସାହସ। ସେ କାହାରିକୁ ଡରୁ ନ ଥିଲେ। ଅତ୍ୟାଚାରୀ ବିଦେଶୀ ସରକାର ବିରୁଦ୍ଧରେ

ସେ ଯେମିତି ଲୋକଙ୍କୁ ମାନୁଥିଲେ ସେମିତ ଭାରତୀୟ ହୋଇ ମଧ୍ୟ ଯେଉଁମାନେ ଦେଶର କଣ୍ଟକ, ଜାତିର ଅନିଷ୍ଟକାରୀ, ସେମାନଙ୍କର କଡ଼ା ସମାଲୋଚନା କରିବାକୁ ପଛଘୁଞ୍ଚା ନ ଥିଲେ । ତାଙ୍କର ଏହି ନିର୍ଭୀକତା ଗୁଣ ଯୋଗୁ ସେ ଅନେକ ସମୟରେ ଦେଶର ବହୁ ଗଣ୍ୟମାନ୍ୟ ଲୋକଙ୍କର ଅପ୍ରିୟ ହୋଇ ପଡ଼ୁଥିଲେ । କଥାରେ ଅଛି, "ସତ୍ୟଂ ବ୍ରୁୟାତ୍ ପ୍ରିୟଂ ବ୍ରୁୟାତ୍ ମା ବ୍ରୁୟାତ୍ ସତ୍ୟମପ୍ରିୟମ୍" ସତ କହିବ ଓ ପ୍ରିୟକଥା କହିବ, ସତ୍ୟ ହେଲେ ମଧ୍ୟ ଅପ୍ରିୟସତ୍ୟ କଦାପି କହିବ ନାହିଁ ।

ଦେଶର ସ୍ୱାଧୀନତା ସଙ୍ଗେ କୁନ୍ତଳାକୁମାରୀ ଦେଶର ଗରିବ କୁଲି ମଜୁରିଆମାନଙ୍କ କଥା ବରାବର ଭାବୁଥିଲେ ଏବଂ ମଜଦୁର ଆନ୍ଦୋଳନର ଏକ ନିଷ୍ଠାପର କର୍ମୀ ଥିଲେ । ଦିଲ୍ଲୀରେ ବହୁ ମଜଦୁର ସଙ୍ଘର କର୍ମକର୍ତ୍ରୀ ଭାବରେ ସେ କାର୍ଯ୍ୟ କରିଅଛନ୍ତି ।

## —ଦେଶବିଦେଶରେ ଖ୍ୟାତି—

ଏହିପରି ଭାବରେ ଦେଶସେବିକା କୁନ୍ତଳାକୁମାରୀ ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ନାନାପ୍ରକାର ଉପାୟରେ ଦେଶ ଓ ଜାତିର ସେବା କରିଅଛନ୍ତି । ଏହିସବୁ କାର୍ଯ୍ୟ ଯୋଗୁ କେବଳ ଉତ୍କଳ ନୁହେଁ, ସାରା ଭାରତରେ କୁନ୍ତଳାକୁମାରୀଙ୍କ ଯଶ ଓ ଖ୍ୟାତି ଖେଳି ଯାଇଥିଲା । ଭାରତର ଚାରିଆଡ଼ୁ ତାଙ୍କୁ ନାନା ଜନହିତକର ଅନୁଷ୍ଠାନ ଓ ସଭାସମିତିରେ ସଭାନେତ୍ରୀତ୍ୱ କରିବା ପାଇଁ ଡକରା ଆସୁଥିଲା ଏବଂ ସେ ଯେଉଁଠାକୁ ଯାଉଥିଲେ ସେଠି ବିପୁଳ ସମ୍ମାନର ଅଧିକାରିଣୀ ହେଉଥିଲେ । ୧୯୨୯ ଖ୍ରୀଷ୍ଟାବ୍ଦରେ ସେ ବୃନ୍ଦାବନର ପ୍ରସିଦ୍ଧ ଗୁରୁକୁଳ ବିଶ୍ୱବିଦ୍ୟାଳୟର ଗଭର୍ଣ୍ଣର ପଦରେ ବରିତା ହୋଇ ଉପାଧି ବିତରଣ କରିଥିଲେ । ୧୯୩୦ ସାଲରେ ସେ ନିଖିଳଭାରତ

ଅର୍ଯ୍ୟ ସଂଗଠନର ସଭାନେତ୍ରୀ ହୋଇ ଅମୃତସର ଯାଇଥିଲେ ଏବଂ ସେଠାରେ ସେ ଯେଉଁ ଭାଷଣ ଦେଇଥିଲେ ତାହା ଦେଶର ବହୁ ଯୁବକଙ୍କ ଅଖି ଫିଟାଇ ସେମାନଙ୍କୁ ନୂଆ ପ୍ରେରଣା ଦେଇଥିଲା । ୧୯୩୧ ସାଲରେ ସେ ନିଖିଳଉତ୍କଳ ନାରୀ ସମିତିର ସଭାନେତ୍ରୀ ହୋଇଥିଲେ ଏବଂ ସେହି ବର୍ଷ ବାଲେଶ୍ୱରରେ ହୋଇ-ଥିବା ନିଖିଳଉତ୍କଳ ନାରୀ ସମ୍ମିଳନୀର ସଭାନେତ୍ରୀତ୍ୱ କରିଥିଲେ । ୧୯୩୨ ସାଲରେ ନିଖିଳଭାରତ ଅର୍ଯ୍ୟ ସଙ୍ଗଠନର ବରେଲିଠାରେ ହୋଇଥିବା ଅଧିବେଶନରେ ସାରା ଭାରତବର୍ଷରୁ ନିର୍ବାଚିତା ହୋଇ ସେ ସଭାନେତ୍ରୀ ହୋଇଥିଲେ । ୧୯୩୪ ସାଲରେ ଗୟାର ଜୈନ-ମାନଙ୍କର ସର୍ବଧର୍ମ ସମ୍ମିଳନୀରେ ନିଜର ମତାମତ ପ୍ରକାଶ କରିବାପାଇଁ ତାଙ୍କୁ ନିମନ୍ତ୍ରଣ କରାଯାଇଥିଲା । ସେହି ବର୍ଷ ଅଲ୍ଲାହାବାଦର ହିନ୍ଦୁ ବିଶ୍ୱବିଦ୍ୟାଳୟ ତାଙ୍କୁ ବକ୍ତୃତା ଦେବାପାଇଁ ନିମନ୍ତ୍ରଣ କରିଥିଲା ଏବଂ ନିଜର ପାଣ୍ଡିତ୍ୟ ଓ ବାଗ୍ମିତାଦ୍ୱାରା ସେଠାରେ ସେ ସମସ୍ତଙ୍କୁ ମୁଗ୍ଧ କରିବାକୁ ସମର୍ଥ ହୋଇଥିଲେ । ଏହାଛଡ଼ା ସେ କଲିକତାରେ ହୋଇଥିବା ପ୍ରବାସୀ ଉତ୍କଳ ସମ୍ମିଳନୀ ଏବଂ ଅଲିଗଡ଼ ସ୍ତ୍ରୀ-ସଙ୍ଗଠନର ସଭାରେ ସଭାନେତ୍ରୀ ହୋଇ ଯାଇଥିଲେ । ସେହି ବର୍ଷ ପୁଣି ଝାନ୍ସୀର ଲକ୍ଷ୍ମୀବାଈଙ୍କ ଜୟନ୍ତୀ ଉପଲକ୍ଷରେ ଗ୍ୱାଲିୟରଠାରେ ଏକ ବିରାଟ ସଭା ଅନୁଷ୍ଠିତ ହୋଇଥିଲା ଏବଂ ଏହି ସଭାରେ ସଭାନେତ୍ରୀ ଭାବରେ କୁନ୍ତଳାକୁମାରୀ ଆପଣାର ଉତ୍ତେଜନାପୂର୍ଣ୍ଣ ଭାଷଣଦ୍ୱାରା ସମସ୍ତଙ୍କୁ ମୁଗ୍ଧ ଚକିତ କରିଥିଲେ ।

ଏହାଛଡ଼ା ଭାରତର ବିଭିନ୍ନ ପ୍ରଦେଶର ଶହ ଶହ ସଭାରେ ସେ ପୁରସ୍କାର ବାଣ୍ଟିଛନ୍ତି, ଭାଷଣ ଦେଇଛନ୍ତି । ୧୯୩୭ ରେ ଛଅ ସାତଟା ବଡ଼ ବଡ଼ ସଭାରେ ସଭାନେତ୍ରୀ ହୋଇ ବିବାଦପୂର୍ଣ୍ଣ

ସମସ୍ୟାସବୁ ସେ ଯେଉଁପରି ସୁନ୍ଦର ଭାବରେ ସମାଧାନ କରିଦେଇଥିଲେ, ସେଥିରେ ଲୋକେ ତାଙ୍କର ବୁଦ୍ଧି ଓ ବିଚକ୍ଷଣତାକୁ ଧନ୍ୟ ଧନ୍ୟ କରୁଥିଲେ । ଜଣେ ଓଡ଼ିଆ-ନାରୀ ପକ୍ଷରେ ଏପରି ବିପୁଳ ସମ୍ମାନର ଅଧିକାରିଣୀ ହେବା କମ୍ ଗୌରବର କଥା ନୁହେଁ ।

## —ନାରୀକଲ୍ୟାଣ—

**ଓଡ଼ିଆ** ନାରୀମାନଙ୍କ ପାଇଁ କୁନ୍ତଳାକୁମାରୀ ଯେତେ କାମ କରିଛନ୍ତି, ଖୁବ୍ କମ୍ ନାରୀ ସେପରି କରିପାରିଛନ୍ତି । ତାଙ୍କ ମତରେ ନାରୀ ହେଉଛନ୍ତି ଦେଶର ଲକ୍ଷ୍ମୀ, ଦେଶର ମା । ନାରୀର ଉନ୍ନତି ବିନା ଦେଶ କଦାପି ଅଗେଇ ପାରିବ ନାହିଁ । ସେ ବରାବର କହୁଥିଲେ ଯେ ନାରୀ ଉଠିଲେ ଘର ଉଠିବ, ଘର ଉଠିଲେ ଗାଁ ଉଠିବ ଏବଂ ଗାଁ ଉଠିଲେ ଦେଶ ଉଠିବ । ସେଥିପାଇଁ କୁନ୍ତଳାକୁମାରୀ ଓଡ଼ିଆନାରୀମାନଙ୍କର ଦୁଃଖଦୁର୍ଦ୍ଦଶା, କୁସଂସ୍କାର ଏବଂ ଲାଞ୍ଛନା ଦୂର କରିବାପାଇଁ ଅଣ୍ଟା ଭିଡ଼ି ବାହାରି ପଡ଼ିଥିଲେ । ପୋଥି ପାଞ୍ଜିର ଅସଂଖ୍ୟ ନିୟମ କାନୁନ ଭିତରେ ଲୁପ୍ତ ହୋଇ ନାରୀ ନିଶ୍ୱାସ ମାରି ପାରୁ ନ ଥିଲା । ଅସୁମାରି କୁସଂସ୍କାରଭିତରେ ବୁଡ଼ି ରହି ଭଲ ମନ୍ଦ ବିଚାର କରିବାର ଶକ୍ତି ସେ ହରାଇଥିଲା । କୁନ୍ତଳାକୁମାରୀ ଓଡ଼ିଆନାରୀମାନଙ୍କୁ ପୋଥି ପାଞ୍ଜିର ଶୃଙ୍ଖଳା ଫିଙ୍ଗି ଦେଇ ଦେଶକାମ ପାଇଁ ପୁରୁଷଙ୍କ ସଙ୍ଗେ ଅଗ୍ରସର ହୋଇ ବାହାରି ପଡ଼ିବାପାଇଁ ଡାକ ଦେଇଥିଲେ । ସତକୁସତ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱ ଓ କୁନ୍ତଳାକୁମାରୀଙ୍କ ଆହ୍ୱାନରେ ବ୍ରାହ୍ମଣଶାସନର ବୋହୂ ଓ କରଣସାହିର କୁଳକନ୍ୟାମାନେ ଶହ ଶହ ସଂଖ୍ୟାରେ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗ ଦେଇଥିଲେ ।

ସୁଦୂର ଦିଲ୍ଲୀ ସହରରେ ରହି ମଧ୍ୟ ଦୂରଦୂରାନ୍ତରର ଓଡ଼ିଆ-ଝିଅମାନଙ୍କର ଖବର ଅନ୍ତର ସେ ରଖୁଥିଲେ । କୌଣସି ଓଡ଼ିଆ-ଝିଅ ଗ୍ରାଜୁଏଟ୍ ହୋଇଛନ୍ତି, ବୃତ୍ତି ପାଇଛନ୍ତି, ଦେଶସେବା କରୁଛନ୍ତି, କଂଗ୍ରେସବାହିନୀ ଗଠନ କରୁଛନ୍ତି ବା ଆଇନ ଅମାନ୍ୟ କରି ଜେଲ ଭୋଗିଛନ୍ତି ଶୁଣିଲେ ତାଙ୍କ ପ୍ରାଣ ଆନନ୍ଦରେ ନାଚ ଉଠୁଥିଲା ।

ନାରୀ ଜାତିର ଉନ୍ନତି ପାଇଁ ତାଙ୍କର କାର୍ଯ୍ୟକଳାପ ଯୋଗୁ ସେ କେବଳ ଉତ୍କଳ ନୁହେଁ, ସାରା ଭାରତରେ ପରିଚିତ ହୋଇଥିଲେ । ଶାରଦା ଆଇନ ନାମ ସମସ୍ତେ ଶୁଣିଥିବେ । ଆମ ସମାଜରୁ ବାଲ୍ୟବିବାହରୂପ କଳଙ୍କକୁ ଦୂର କରିବାପାଇଁ ସ୍ୱର୍ଗୀୟ ହରବିଲାସ ଶାରଦା ଏହି ଆଇନଟି କରାଇଥିଲେ । ତାଙ୍କର ନାଁ ଅନୁସାରେ ଏହାର ନାମ ଶାରଦା ଆଇନ ହୋଇଅଛି । ପାର୍ଲିଅ-ମେଣ୍ଟରେ ପାସ ହୋଇଯିବା ପରେ ଏହି ଆଇନଟିକୁ କାଯର୍ଯ୍ୟ କାର୍ଯ୍ୟରେ ପରିଣତ କରିବାକୁ ହେବ, ସେଥିପାଇଁ ପଞ୍ଜାବ ଓ ଦିଲ୍ଲୀରେ ଗୋଟିଏ କମିଟି ଗଢ଼ା ଯାଇଥିଲା । କୁନ୍ତଳାକୁମାରୀ ଏହି କମିଟିରେ ସଭ୍ୟନେର୍ତ୍ତୀ ନିର୍ବାଚିତା ହୋଇଥିଲେ ଏବଂ ଏହି କାର୍ଯ୍ୟପାଇଁ ତାଙ୍କୁ ସାରା ପଞ୍ଜାବ ଓ ଦିଲ୍ଲୀ ଗସ୍ତ କରିବାକୁ ହୋଇଥିଲା । ଏହି ସାମାନ୍ୟ ଉଦାହରଣଟିରୁ ସେତେବେଳକାର ଗଣ୍ୟମାନ୍ୟ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ମଧ୍ୟରେ କୁନ୍ତଳାକୁମାରୀଙ୍କର ସ୍ଥାନ କଣ ଥିଲା ସହଜରେ ଜାଣିହେବ ।

କୁନ୍ତଳାକୁମାରୀ ଅଧୁନିକ ଯୁଗର ଜଣେ ଉଚ୍ଚଶିକ୍ଷିତା ନାରୀ ହୋଇ ମଧ୍ୟ ଚାଲିଚଳଣି, ରୀତି ଓ ଆଦର୍ଶରେ ଖାଣ୍ଟି ଓଡ଼ିଆଣୀ ଥିଲେ । କାଉ ଆପଣା ଶୋଭା ବଢ଼ାଇବାପାଇଁ ହଜାରେ ମୟୂର-ପୁଚ୍ଛ ଖୋସିଲେ ବି ଯେଉଁ କାଉକୁ ସେହି କାଉ ରହିବ । ସେହିପରି

ସାହେବ ଢଙ୍ଗଢାଙ୍ଗ, ବେଶଭୂଷାସବୁ ଅନୁକରଣ କରିବାକୁ ଯେତେ ଚେଷ୍ଟା କଲେ ବି ଆମେ କଦାପି ସାହେବ ସାହେବାଣୀ ହୋଇପାରିବା ନାହିଁ । ଖାଲି ଲୋକଭିତରେ, ଦଅଁ ଗଡ଼ୁ ଗଡ଼ୁ ବାନର । ସେଥିପାଇଁ ଦିଲ୍ଲୀ ଓ ବଙ୍ଗଳା ନାରୀମାନଙ୍କ ଅତ୍ୟଧିକ ସାହେବୀ ଢଙ୍ଗଢାଙ୍ଗ ଓ ଅନୁକରଣକୁ ସେ ଭାରି ଘୃଣା କରୁଥିଲେ । ତାଙ୍କ ମତରେ ଓଡ଼ିଆ ସ୍ତ୍ରୀ ଲୋକଙ୍କୁ ଶାଢ଼ୀ ସିନ୍ଦୂର ଯେମିତି ମାନେ, କୋଟ ପାଇଜାମା କଦାପି ସେପରି ଶୋଭାଇବ ନାହିଁ । ଆମ ଶାଗ ପଖାଳ ଗୁଡ଼ ବିସ୍କୁଟ ପାଉଁରୁଟିରେ ମନ ଦେଲେ ଶ୍ରମ ସହିବ ସିନା ବାସ୍ତୁ ବସିବ ନାହିଁ । ସେଥିପାଇଁ ସର୍ବଦା ଗୃହଚାଳଣ, ସଙ୍ଗୀତ, ଚିତ୍ରା ଓ ଆଦର୍ଶରେ ଓଡ଼ିଆଣୀ ତଥା ଭାରତୀୟା ହେବା ପାଇଁ ସେ ଓଡ଼ିଆଝିଅମାନଙ୍କୁ ବରାବର ଉପଦେଶ ଦେଉଥିଲେ ।

## —ଧର୍ମ—

ଆଗରୁ କୁହାଯାଇଛି କୁନ୍ତଳାକୁମାରୀ ଖ୍ରୀଷ୍ଟିୟାନ ଘରେ ଜନ୍ମ ହୋଇଥିଲେ । ହେଲେହେଁ ତାଙ୍କର ହିନ୍ଦୁସଭ୍ୟତା ଓ ସଂସ୍କୃତିପ୍ରତି ଭାରି ଆସ୍ଥା ଥିଲା । ସେ ମନେମନେ ପୁଣି ହିନ୍ଦୁ ହେବାକୁ ଇଚ୍ଛା କରୁଥିଲେ । କିନ୍ତୁ ଖ୍ରୀଷ୍ଟିୟାନ କିମ୍ବା ମୁସଲମାନ ଧର୍ମ ପରି ହିନ୍ଦୁ ଧର୍ମରେ ଅନ୍ୟ ଧର୍ମର ଲୋକଙ୍କୁ ଗ୍ରହଣ କରାଯାଏ ନାହିଁ । ତୁମେ କଳାପାହାଡ଼ କଥା ଶୁଣିଥିବ । ସେ ହିନ୍ଦୁ ଧର୍ମରେ ପଶିବା ପାଇଁ ବହୁତ ଚେଷ୍ଟା କଲା । ଶେଷକୁ ନିରାଶ ହୋଇ ହିନ୍ଦୁଧର୍ମର ପରମ ଶତ୍ରୁ ପାଲଟିଲା । ହିନ୍ଦୁଧର୍ମର ଏହି ଅଭାବ ଦେଖି ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଆର୍ଯ୍ୟ ଧର୍ମ ନାମକ ଏକ ସଂପ୍ରଦାୟ ଗଢ଼ିଲେ । ଏଥିରେ ଅନ୍ୟ ଧର୍ମର ଲୋକଙ୍କୁ ହିନ୍ଦୁଧର୍ମରେ ନିଆଯିବାର ବିଧି ଅଛି । ଦିଲ୍ଲୀ ଯିବାପରେ କୁନ୍ତଳାକୁମାରୀ ଖ୍ରୀଷ୍ଟିୟାନ ଧର୍ମ ଛାଡ଼ି

ଅନ୍ୟ ଧର୍ମ ଗ୍ରହଣ କଲେ ଏବଂ କୃଷ୍ଣପ୍ରସାଦ ବ୍ରହ୍ମଚାରୀଙ୍କ ବିଭା ହେଲେ ।

ଭଗବତ୍ଭକ୍ତ ଧର୍ମପ୍ରତି ତାଙ୍କର କମ ଆସ୍ଥା ନ ଥିଲା । ସେ କହୁଥିଲେ, ଧୂର୍ତ୍ତ ଦରିଦ୍ର ଲୋକଙ୍କୁ ଠକିବା ପାଇଁ ପୁରୋହିତ, ମୁଲ୍ଲା ଓ ଧର୍ମଯାଜକମାନେ ଏହିସବୁ ଧର୍ମ ପ୍ରଚାର କରିଛନ୍ତି । କିନ୍ତୁ ଭଗବାନଙ୍କଠାରେ ତାଙ୍କର ଗଭୀର ବିଶ୍ୱାସ ଥିଲା । କୃଷ୍ଣ, ରାମ, ରାମକୃଷ୍ଣ ପରମହଂସ ଓ ସ୍ୱାମୀ ବିବେକାନନ୍ଦ ପ୍ରଭୃତି ମହାପୁରୁଷଙ୍କ ଫଟୋ ରଖି ସେ ପୂଜା କରୁଥିଲେ । କୁନ୍ତଳାକୁମାରୀଙ୍କ ଜୀବନୀ ଆଲୋଚନା କଲେ ଜଣାଯାଏ ଯେ, ଧର୍ମ ଅପେକ୍ଷା ଜାତୀୟତା ଉପରେ ସେ ବେଶି ଜୋର ଦେଉଥିଲେ । ଦେବତା ଅପେକ୍ଷା ମଣିଷକୁ ସେ ବେଶି ଭଲ ପାଉଥିଲେ । ମଣିଷକୁ ସାହସ ଦେଇ ସେ କହୁଥିଲେ—

"ଶୁଣ ରେ ମଣିଷ ଭାଇ !
ହୁଅ ନାହିଁ ହୀନ,
ତୁମ୍ଭ ପରି ପ୍ରାଣୀ ଜଗତେ ଆଉ କେହି ନାହିଁ ।"

ଭାଗ୍ୟବାଦରେ ତାଙ୍କର ବିଶ୍ୱାସ ନ ଥିଲା । ସେ କହୁଥିଲେ, ଭାଗ୍ୟ କିଛି ନୁହେଁ । ଲୋକଙ୍କୁ ଠକିବା ପାଇଁ ପଣ୍ଡା ପୂଜାରୀଙ୍କର ଏ ଗୋଟାଏ ଦୁଆ । କାମ କରିବା ପାଇଁ ମଣିଷ ଜନ୍ମ ହୋଇଛି । ଦୁଃଖ କଷ୍ଟ ସଙ୍ଗେ ଲଢ଼େଇ କରିବା ପାଇଁ ଭଗବାନ୍ ତାକୁ ହାତ ଗୋଡ଼, ସାହସ ଓ ଶକ୍ତି ଦେଇଛନ୍ତି । ସେ କାହିଁକି ଅକାରଣରେ ଭାଗ୍ୟ ଆଗରେ ମୁଣ୍ଡ ନୁଆଇଁ ନିଜର ମଣିଷପଣିଆକୁ ଜଳାଞ୍ଜଳି ଦେବ ?

## —ସାମାଜିକ ଆଦର୍ଶ—

କୁନ୍ତଳାକୁମାରୀ କଥା ଓ କାର୍ଯ୍ୟ ଉଭୟରେ ବିପ୍ଳବୀ ଥିଲେ । ସେ ସବୁବେଳେ ସମାଜର ପରିବର୍ତ୍ତନ ଖୋଜୁଥିଲେ । ପୁରୁଣା କଳଙ୍କିଲଗା ସମାଜକୁ ଭାଙ୍ଗି ଦେଇ ତା ସ୍ଥାନରେ ଏକ ନୂଆ ସମାଜ ଗଢ଼ିବାକୁ ସେ କଳ୍ପନା କରୁଥିଲେ । ଜାତି ଲୁଗାରେ ତାଳି ପକାଇଲା ଭଳି ଏଠିସେଠି ସାମାନ୍ୟ ସଂସ୍କାରର ସେ ପକ୍ଷପାତୀ ନ ଥିଲେ । ସେ ଚାହୁଁଥିଲେ ଯେ ତାଙ୍କ କଳ୍ପିତ ସମାଜରେ ଦୁଃଖ-ଦୁର୍ଦ୍ଦଶା, ଅଭାବ-ଅନାଟନ ରହିବ ନାହିଁ । ବଡ଼ଲୋକ, ଗରିବ-ଲୋକଙ୍କ ଭିତରେ ଯେଉଁ ମେଘନାଦ ପାଚେରି ଗଢ଼ି ଉଠିଛି, ତାକୁ ଭାଙ୍ଗି ଦିଆଯିବ ।

ଓଡ଼ିଶାରେ ଏକ ନୂଆ ଯୁଗର ବାଣୀ ସେ ପ୍ରଥମେ ଶୁଣାଇଲେ । ମୁକ୍ତ ଆକାଶର ବିହଙ୍ଗ ପରି କୁନ୍ତଳାକୁମାରୀ ସ୍ୱାଧୀନ ଥିଲେ । ଛୋଟ ଛୋଟ କଥା, ଛୋଟ ଛୋଟ ସ୍ୱାର୍ଥରେ ବାନ୍ଧି ହୋଇ ରହିବାକୁ ସେ ଇଚ୍ଛା କରୁ ନ ଥିଲେ । ଓଡ଼ିଶାର ଦୁଃଖଦୁର୍ଦ୍ଦଶା କଥା ଭାବି ସେ ଯେପରି କାତର ହେଉଥିଲେ ସାରା ମଣିଷ ଜାତିର କଥା ବି ସେ ସେହିପରି ଚିନ୍ତା କରୁଥିଲେ । ସେଥିପାଇଁ ଓଡ଼ିଶାର ଯୁବକ ଓ ଯୁବତୀମାନଙ୍କୁ କ୍ଷୁଦ୍ର ପରିସର, କ୍ଷୁଦ୍ର ଚିନ୍ତା ଭିତରେ ଆପଣାକୁ ହଜାଇ ନ ଦେବାପାଇଁ ସେବାରମ୍ବାର ଆହ୍ୱାନ ଦେଉଥିଲେ ।

ନିଜର ଅଧ୍ୟବସାୟ ଓ ଦକ୍ଷତା ବଳରେ କୁନ୍ତଳାକୁମାରୀ ବହୁତ ପଇସା ଉପାର୍ଜ୍ଜନ କରିଥିଲେ ସତ, କିନ୍ତୁ ଧନସମ୍ପଦପ୍ରତି ତାଙ୍କର ମୋହ ନ ଥିଲା । ସେ ନୀରବରେ ବହୁତ ଦାନ କରୁ-ଥିଲେ । ତାଙ୍କ ରୋଜଗାରର ଅଧିକାଂଶ ସାହିତ୍ୟସେବା, ଦେଶର ଜନହିତକର ଅନୁଷ୍ଠାନ ଓ ଗରିବଦୁଃଖୀମାନଙ୍କୁ ସାହାଯ୍ୟ କରିବାରେ

ଖର୍ଚ୍ଚ ହେଉଥିଲା । ଗରିବ ଲୋକମାନଙ୍କୁ ସେ ବିନା ପଇସାରେ ଚିକିତ୍ସା କରୁଥିଲେ ଏବଂ ଗରିବ ପାଠକମାନେ ତାଙ୍କ ବହି କିଣି-ପାରିବେ ନାହିଁ ବୋଲି ସେ ସେଗ୍ରନ୍ଥକୁ ଅଧା ଦାମରେ ବିକି କରିବାର ବ୍ୟବସ୍ଥା କରିଥିଲେ ।

## —ପାରିବାରିକ ଜୀବନ—

ଡାକ୍ତର କୁନ୍ତଳାକୁମାରୀ, କବି କୁନ୍ତଳାକୁମାରୀ ଓ ବିପ୍ଳବୀ କୁନ୍ତଳାକୁମାରୀଙ୍କ କଥା ଆମେ ଜାଣିଲେଁ । କିନ୍ତୁ ସେ ଖାଲି ସେତିକି ନ ଥିଲେ, ସେ ଥିଲେ ଏ ଦେଶର ଜଣେ ଶ୍ରେଷ୍ଠ ନାରୀ ଓ ଆଦର୍ଶ ମା । ତାଙ୍କ ବିବେଚନାରେ ନାରୀ କେବଳ ପାଠ ପଢ଼ି ରାଜନୀତିରେ ବା ସମାଜସେବାରେ ଯୋଗ ଦେଲେ ଚଳିବ ନାହିଁ । ତାକୁ ବୋହୂ ହୋଇ ଘରକରଣା କରିବାକୁ ହେବ । ମା ହୋଇ ସନ୍ତାନ ଗଢ଼ିବାକୁ ହେବ । ସାଧାରଣତଃ ଦେଖାଯାଏ ଯେ ଯେଉଁ ସ୍ତ୍ରୀଲୋକମାନେ ଟିକିଏ ଅଧୁନିକ ଧରଣର ଲେଖାପଢ଼ା ଶିଖନ୍ତି, ସେମାନେ ନାରୀତ୍ୱର ଗୌରବରେ ଜଳାଞ୍ଜଳି ଦେଇ ପୁରୁଷପରି ସ୍ୱାଧୀନ ଜୀବନଯାତ୍ରା ନିର୍ବାହ କରିବାକୁ ଚେଷ୍ଟା କରନ୍ତି । କିନ୍ତୁ କୁନ୍ତଳାକୁମାରୀ ସେପରି କିଛି ନ ଥିଲେ । ଆଧୁନିକ ଶିକ୍ଷାର ଆଲୋକ ସେ ଯଥେଷ୍ଟ ପାଇଥିଲେ । ଅର୍ଥର ବି ଅଭାବ ନ ଥିଲା । ଇଚ୍ଛା କରିଥିଲେ ସେ ସ୍ୱଚ୍ଛନ୍ଦରେ ସ୍ୱାଧୀନଭାବରେ ଜୀବନ ନିର୍ବାହ କରି ପାରିଥାନ୍ତେ । କିନ୍ତୁ ତାଙ୍କ ଜୀବନର ଆକାଂକ୍ଷା ଥିଲା, ସେ ଗୋଟିଏ ବୋହୂ ହେବେ, ସନ୍ତାନସନ୍ତତିର ମା ହେବେ ।

ଡାକ୍ତର, ଦେଶସେବୀ, ସାହିତ୍ୟସାଧକ ଭାବରେ କୁନ୍ତଳା-କୁମାରୀଙ୍କର ଖ୍ୟାତି ତ ଦେଶସାରା ବ୍ୟାପି ଯାଇଥିଲା । କିନ୍ତୁ ଆଦର୍ଶ ନାରୀ, ଆଦର୍ଶ ଗୃହିଣୀ ଏବଂ ଆଦର୍ଶ ମା ଭାବରେ ତାଙ୍କର କମ୍ ଖ୍ୟାତି ନ ଥିଲା । ତାଙ୍କ ପାରିବାରିକ ଜୀବନରେ ହିନ୍ଦୁ ନାରୀର

ଅଦର୍ଶ ମୂର୍ତ୍ତିମନ୍ତ ହୋଇ ଥିଲା । ଗୃହିଣୀ ଭାବରେ ସେ ଅତ୍ୟନ୍ତ ଅତିଥିପରାୟଣା ଥିଲେ । ଗୃହର ଗୃହକର୍ତ୍ତ୍ରୀ ଥିଲେ ବି ନିଜ ହାତରେ ରନ୍ଧାବାଢ଼ି ଅତିଥିମାନଙ୍କୁ ଖୁଆଇବାକୁ ସେ ଭାରି ସୁଖ ପାଉଥିଲେ । ତାଙ୍କ ଗୃହ ଏକପ୍ରକାର ପାନ୍ଥ-ନିବାସ ସ୍ୱରୂପ ହୋଇଥିଲା । ଓଡ଼ିଶା ଓ ଓଡ଼ିଶା ବାହାରୁ ବହୁ ଅତିଥି ପ୍ରତିଦିନ ତାଙ୍କ ଘରକୁ ଆସୁଥିଲେ । କେବେ କେବେ ଅତିଥି ନ ଆସିବା ଆଶଙ୍କା କରି ସେ ଅସ୍ଥିର ହୋଇ ପଡ଼ୁଥିଲେ ।

ପରିଶ୍ରମ ଥିଲା ତାଙ୍କର ଚିର ସହଚର । ସେଇଥିରେ ସେ ସୁଖ ଶାନ୍ତି ପାଉଥିଲେ । ଜାଣିକରି ଘଣ୍ଟାଟିଏ ମଧ୍ୟ ସେ ନଷ୍ଟ କରୁ ନ ଥିଲେ ।

କୁନ୍ତଳାକୁମାରୀଙ୍କର ପ୍ରଥମେ ଗୋଟିଏ ଝିଅ ହୋଇଥିଲା । ସେ ଝିଅଟିର ନାମ ଉତ୍ପଳକୁମାରୀ । ୧୯୩୭ ଖ୍ରୀଷ୍ଟାବ୍ଦରେ ତାଙ୍କର ଗୋଟିଏ ପୁଅ ହୋଇଥିଲା । କିନ୍ତୁ ସେ ପିଲାଟି ଅଳ୍ପ ଦିନ ବଞ୍ଚି ବସନ୍ତରେ ମରିଗଲା । ସେହି ଦିନଠୁଁ ତାଙ୍କର ମାତୃହୃଦୟ ଭାଙ୍ଗି ପଡ଼ିଲା, ସେ ଦିନସାରା ସେହି ପୁଅଟିକୁ ଝୁରି ହେଲେ । ତାଙ୍କର ଧାରଣା ଥିଲା ଯେ ପିଲାଟି ମହାପୁରୁଷ, ସେ ପୁଣି ତାଙ୍କ କୋଳକୁ ଫେରିଆସିବ ।

## —ଶେଷ ପ୍ରୟାଣ—

୧୯୩୮ ଖ୍ରୀଷ୍ଟାବ୍ଦର ଅଗଷ୍ଟ ୨୩ ତାରିଖ ଦିନ ତାଙ୍କର ଗର୍ଭବେଦନା ଆରମ୍ଭ ହେଲା । ଆଗରୁ ଦକ୍ଷ ବଡ଼ ବଡ଼ ଡାକ୍ତର-ମାନଙ୍କୁ ନିଯୁକ୍ତ କରି ରଖା ଯାଇଥିଲା । ପ୍ରାୟ ସାତଟାବେଳେ ପୁଅଟିଏ ଜନ୍ମ ହେଲା ।

କୁନ୍ତଳାକୁମାରୀ ଶୁଣିଲେ 'ପୁଅ' ହୋଇଛି । ସେ ଆନନ୍ଦରେ ଅଧୀର ହୋଇ ପଡ଼ିଲେ । କିନ୍ତୁ ଏତେ ଆନନ୍ଦ ତାଙ୍କର ଦୁର୍ବଳ ମନ ସହ୍ୟ କରିପାରିଲା ନାହିଁ । ହୃତ୍‌କ୍ରିୟା ବନ୍ଦ ହୋଇଯିବା ଫଳରେ କୁନ୍ତଳାକୁମାରୀଙ୍କର ଜୀବନ-ପକ୍ଷୀ ଅସ୍ଥିପିଞ୍ଜରାକୁ ଦନ୍ତ-ଚଞ୍ଚୁରେ ଛିଡ଼ି କେଉଁ ଅଜଣା ଆକାଶକୁ ଉଡ଼ିଗଲା । ସବୁ ଦିନ ପାଇଁ ଉତ୍କଳଭାରତୀ କୁନ୍ତଳାଙ୍କର ବୀଣାବାଦନ ବନ୍ଦ ହୋଇଗଲା । ତାଙ୍କର ମୃତ୍ୟୁ ସମ୍ବାଦ ଶୁଣି ଦିଲ୍ଲୀ ସହରରେ ଏକ ଗଭୀର ଦୁଃଖର ଛାୟା ଖେଳିଗଲା । ଦିଲ୍ଲୀର ବିଶିଷ୍ଟ ବ୍ରାହ୍ମଣମାନେ ତାଙ୍କର ଶବ ବହନ କରି ଶ୍ମଶାନକୁ ନେଇଥିଲେ । ସହରର ବହୁ ଦେଶକର୍ମୀ, ଗଣ୍ୟମାନ୍ୟ ବ୍ୟକ୍ତି, ସ୍କୁଲକଲେଜ ଛାତ୍ର, ପ୍ରଫେସର ଶୋଭାଯାତ୍ରାରେ ଯାଇଥିଲେ ।

ତାଙ୍କ ମୃତ୍ୟୁରେ ଦୁଃଖ ପ୍ରକାଶ କରିବା ପାଇଁ ଦିଲ୍ଲୀ କଂଗ୍ରେସ ପକ୍ଷରୁ ଯେଉଁ ଶୋକସଭା ଅନୁଷ୍ଠିତ ହୋଇଥିଲା ସେଥିରେ ୩୦୦୦୦ ଲୋକ ଯୋଗ ଦେଇଥିଲେ । କୁନ୍ତଳାକୁମାରୀଙ୍କ ବିୟୋଗରେ ଓଡ଼ିଶା-ଆକାଶର ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର ଚିର କାଳ ପାଇଁ ଖସିପଡ଼ିଲା । ସାରା ଓଡ଼ିଆ ଭୂଇଁ ଘନ ଅନ୍ଧକାରରେ ବୁଡ଼ିଗଲା । କେବଳ ଉତ୍କଳ ନୁହେଁ, ତାଙ୍କ ମୃତ୍ୟୁରେ ସାରା ଭାରତ ଗୋଟିଏ ଉଜ୍ଜ୍ୱଳ ରତ୍ନ ହରାଇଲା ।

---

ମୁଦ୍ରାକର—ଶ୍ରୀ ଘନଶ୍ୟାମ ଦାଶ, ନବ ପ୍ରୋର୍ସ ପ୍ରେସ୍, ବ୍ରହ୍ମପୁର

# ଆମ ପଡ଼ିଶା ଅଡ଼ିଶା ସିରିଜ୍

ଲେଖକ—ପଣ୍ଡିତ ଗୋଦାବରୀଶ ମିଶ୍ର

୧ । ଅଷ୍ଟ୍ରେଲିଆ
୨ । ଦକ୍ଷିଣ ଅଫ୍ରିକା
୩ । ପଶ୍ଚିମ ଗୋଲାର୍ଦ୍ଧ
୪ । ମଧ୍ୟ ଅମେରିକା
୫ । ଗ୍ରେଟ୍ ବ୍ରିଟେନ୍

ପ୍ରତ୍ୟେକରେ ସେହି ଦେଶମାନଙ୍କର ଭୌଗୋଳିକ, ସାମାଜିକ ଓ ରାଜନୈତିକ ବିବରଣୀ ସରଳ ଭାଷାରେ ଦିଆଯାଇଛି ।

"ଗ୍ରେଟ୍ ବ୍ରିଟେନ୍"—ସମ୍ପୂର୍ଣ୍ଣ ନୂଆ ବହି ।

ପ୍ରତ୍ୟେକ ବହିର ମୂଲ୍ୟ ଛଅ ଅଣା

---

ଅଧ୍ୟାପକ ଗୋକୁଳାନନ୍ଦ ମହାପାତ୍ରଙ୍କ ପ୍ରଣୀତ—

# ଅଜାଙ୍କ ମଜାକଥା

( ପିଲାଙ୍କ ପାଇଁ ଶିଳ୍ପ-ବିଜ୍ଞାନମୂଳକ ଗଳ୍ପ )

(୧) କାଚ କଥା
(୨) କାଗଜ କଥା
(୩) ଚିନି କଥା
(୪) ସାର କଥା
(୫) କିରାସିନି କଥା

ପ୍ରତିଖଣ୍ଡ ଅଠ ଅଣା

ଓଡ଼ିଶାରେ ପ୍ରସିଦ୍ଧ ଶିଶୁ ସାହିତ୍ୟିକମାନଙ୍କ ଦ୍ୱାରା ସଙ୍କଳିତ

# ଅମର ଚରିତମାଳା

## ପ୍ରତ୍ୟେକର ମୂଲ୍ୟ ଛଅ ଅଣା

୧ । ଜୟଦେବ
୨ । ଜଗନ୍ନାଥ ଦାସ
୩ । ସାଧୁସୁନ୍ଦର ଦାସ
୪ । ସାରଳା ଦାସ
୫ । ଉପେନ୍ଦ୍ର ଭଞ୍ଜ
୬ । ବଳସୂର୍ଯ୍ୟ
୭ । ରାଧାନାଥ ରାୟ
୮ । ଗଙ୍ଗାଧର ମେହେର
୯ । ନନ୍ଦକିଶୋର ବଳ
୧୦ । ଫକୀରମୋହନ
୧୧ । ଚନ୍ଦ୍ରଶେଖର
୧୨ । ବିଶ୍ୱନାଥ କର
୧୩ । କୁନ୍ତଳା କୁମାରୀ
୧୪ । ଗୋବିନ୍ଦ ରଥ
୧୫ । ଜୟୀ ରାଜଗୁରୁ
୧୬ । ବୁଷ ଖୁଣ୍ଟିଆ
୧୭ । କୃତ୍ତିବାସ ପଟ୍ଟସାଣି
୧୮ । ଉତ୍କଳମଣି ଗୋପବନ୍ଧୁ
୧୯ । କୁଳବୃଦ୍ଧ ମଧୁସୂଦନ
୨୦ । କର୍ମଯୋଗୀ ଗୌରୀଶଙ୍କର
୨୧ । ପଣ୍ଡିତ କୃପାସିନ୍ଧୁ
୨୨ । ନରସିଂହ ଦାସ
୨୩ । ନୀଳମଣି ବିଦ୍ୟାରତ୍ନ
୨୪ । ଖାରବେଳ
୨୫ । ଯଯାତିକେଶରୀ
୨୬ । ଚୋଳଗଙ୍ଗ ଦେବ
୨୭ । ଅନଙ୍ଗଭୀମ ଦେବ
୨୮ । କପିଳେନ୍ଦ୍ର ଦେବ
୨୯ । ପୁରୁଷୋତ୍ତମ ଦେବ
୩୦ । ପ୍ରତାପରୁଦ୍ର ଦେବ
୩୧ । ମୁକୁନ୍ଦଦେବ
୩୨ । ଶ୍ରୀ ରାମଚନ୍ଦ୍ର ଭଞ୍ଜ
୩୩ । ସୁଦ୍ଧଳ ଦେବ
୩୪ । ଉତ୍କଳର ମଧୁସୂଦନ
୩୫ । ଗୋପାଳ ପ୍ରହରାଜ
୩୬ । ଶଶୀଭୂଷଣ ରାୟ

ପ୍ରକାଶକ—

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲିଃ